# ଜୁନି ବେଲୁନ୍ କଥା

ଦାଶ ବେନହୁର






ଭୁବନେଶ୍ୱର

# କୁନି ବେଲୁନ୍ କଥା

ଦାଶ ବେନହୁର



# କୁନି ବେଲୁନ୍ କଥା

(୩ରୁ ୮ ବର୍ଷର ପିଲାଙ୍କ ପାଇଁ ଗପ)

ଲେଖକ : ଦାଶ ବେନହୁର
ସ୍ୱତ୍ୱ : ଦାଶ ବେନହୁର
ପ୍ରଚ୍ଛଦ ଓ
ଚିତ୍ର : ବଳଦେବ ମହାରଥୀ
ପ୍ରକାଶକ : ଶିକ୍ଷାସନ୍ଧାନ, ଏ-୧୨ ହାଉସିଂବୋର୍ଡ଼ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ପ୍ରକାଶକାଳ: ମେ, ୨୦୦୯
ମୁଦ୍ରଣ : ଶିକ୍ଷା ପ୍ରକାଶନୀ, ଏ-୧୨ ହାଉସିଂବୋର୍ଡ଼ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ମୂଲ୍ୟ : ଟ ୪୦/-

**KUNI BELUN KATHA**

(Stories for Children between 3 to 8)

Author : Dash Benhur
©: Dash Benhur
Cover & illustration : Baladev Maharatha
Publisher : Sikshasandhan, A-12,
Baramunda, Housing Board
Colony, Bhubaneswar-751003
First Edition: May, 2009
Printed at : Siksha Prakashani, A-12,
Baramunda, Housing Board
Colony, Bhubaneswar-751003
Price : 40.00

# ଗପଗୁଡ଼ିକ ସଂପର୍କରେ

ଅତି ଛୋଟ ପିଲା ସିନା ଛନ୍ଦ ଓ ତାଳରେ ବନ୍ଧା ଗୀତ ଶୁଣିବାକୁ ଭଲପାଏ ମାତ୍ର ଟିକିଏ ହେତୁ ପାଇଗଲେ ସେ ଗପ ଶୁଣିବାକୁ କନ କନ ହୁଏ। ହେତୁ ପାଇବାର ଅର୍ଥ କଥା ନ ବୁଝିବାକୁ ସମର୍ଥ ହେବା। ପ୍ରତିଟି ମଣିଷ ପିଲା ୩ରୁ ୫ ବର୍ଷ ଭିତରେ ଏଇ ସାମର୍ଥ୍ୟ ହାସଲ କରେ। ଅର୍ଥହୀନ ଅନାବନା ଗୀତ ଭଳି ବେଳେବେଳେ ଅବିଶ୍ୱାସ୍ୟ ଅପ୍ରାସଙ୍ଗିକ କାହାଣୀ ବି ସେ ତବ ତବ ଆଖିରେ ଶୁଣେ। ସିଂହ କଥା କହେ, ବେଲୁନ କାନ୍ଦେ ଓ ଫୁଲମାନେ ସଭା କରନ୍ତି ଆଦି କଥାମାନ ସେ ଆଗ୍ରହରେ ମନକୁ ନିଏ। ଗପ ଭିତରେ ଥିବା ସେଭଳି ବର୍ଣ୍ଣନା ତା' ଅଜାଣତରେ ତାକୁ ଆନନ୍ଦ ଓ ଆଲୋକରେ ଜୁଡୁବୁଡୁ କରନ୍ତି। ସେ କଳ୍ପନା କରି ଶିଖେ, ବଡ଼ ହୁଏ, ମଣିଷ ହୁଏ।

ସେଇଭଳି ଏକ ଚେଷ୍ଟାରେ ଏ ଛୋଟ ବହିଟିରେ ଅତି ଛୋଟ ପିଲାଙ୍କ ପାଇଁ ୭ ଗୋଟି ଗପ ଗୁନ୍ଥାଗୁନ୍ଥି। ମୋର ଆଶା ଗପଗୁଡ଼ିକ ସେମାନଙ୍କ ମନକୁ ଛୁଇଁବ।

**ଦାଶ ବେନହୁର**



# ଏଥିରେ ଅଛି





# ଫୁଲମାନଙ୍କ ସଭା



ଦିନକର କଥା । ଉପରବେଳା ସମୟ ।

ଫୁଲମାନଙ୍କର ସଭା ବସିଲା । କେତେଆଡୁ କେତେ ଫୁଲ ଆସିଲେ । କିଏ ଡେଇଁ ଡେଇଁ ଆସିଲେ ତ କିଏ ଉଡ଼ି ଉଡ଼ି ଆସିଲେ । ସଭା ଜମୁଥାଏ ବାସ୍ନାରେ । କେତେ ଆଡ଼େ କେତେ ରଙ୍ଗ । ଚାରିଆଡ଼ ମହକି ଯାଉଥାଏ ମହ ମହ ହୋଇ । ସଭିଏଁ ଥାନ ମାଡ଼ି ବସିଲେ । ଚୁପ୍‌ଚାପ୍ କଥା ଚାଲିଲା । ଫୁସୁରୁଫାସର ହେଲେ ସମସ୍ତେ ।

ସଭାପତି ଆସନ ଖାଲି । ସଭାପତି କିଏ ହେବ ? ଏତେ ଜାତିର ଫୁଲଙ୍କ ଭିତରୁ କିଏ ସେ ଆସନରେ ବସିବ ?

ଏତିକିବେଳେ ଦୁଦୁରାଫୁଲ ଠିଆହୋଇ ବଡ଼ ପାଟିରେ କହିଲା-"ଆଜି ସଭାରେ ଫୁଲକୋବି ସଭାପତି ହେବା ପାଇଁ ମୁଁ କଥା ଉଠାଉଛି ।" ଅମରିଫୁଲ କୋଉଠି ଥିଲା ପେଁକାଳିଆ ସ୍ୱରରେ କହିଲା-"ଆମର ସେଥିରେ ଅରାଜି ନାହିଁ ।"

ଫୁଲକୋବି ସେଇଠୁ ସଭାପତି ହେଲା । ସଭା ଚାଲିଲା ।

କୋଉ ବିଷୟ ଆଲୋଚନା ହେବ ? ସଭିଏଁ ଏକ ସ୍ୱରରେ କହିଲେ-"କିଏ କେମିତି ଫୁଟେ ଆଜି ସେ କଥା ପଡୁ ।"

ଫୁଲକୋବି କହିଲା-"ହଉ ପଡୁ ।"

ଏଥର ପହିଲେ ଉଠିଲା ଜହ୍ନିଫୁଲ । ଡଗଡଗ ହେଇ ହସିହସିକା କହିଲା-"ମୁଁ ଫୁଟୁଥାଏ ଠୋ ଠୋ ।"

କାକୁଡ଼ିଫୁଲ ସେଇଠୁ କହିଲା-"ମୁଁ ବି ଠୋ ଠୋ ହୋଇ ଫୁଟେ ।"

ଟଗର ଫୁଲ କହିଲା-"ମୁଁ ଟକ୍‌ଟାକ୍ ଫୁଟେ ।"

ଟରାଟ ଫୁଲ କହିଲା-"ମୁଁ ଠକ୍‌ଠାକ୍ ଫୁଟେ ।"

କନିଅର ଫୁଲ କହିଲା-"ମୁଁ ଫନ୍‌ଫାନ୍ ଫୁଟେ ।"

ମନ୍ଦାର ଫୁଲ କହିଲା-"ମୁଁ ସନସାନ୍ ଫୁଟେ ।"

ଏଇମିତି ଚାଲିଲା କଥା । ଜଣକ ପରେ ଜଣେ ହେଇ ସମସ୍ତେ କହି ଚାଲିଲେ ନିଜ କଥା । ଦି' ଚାରିଜଣ ହେଇଛନ୍ତି ଯେ ସଅଳ ସରିବ ! ଶହ ଶହ ଫୁଲ । କିଏ ପଡ଼ିଆ ପନ୍ତାରରୁ ଆସିଛି, କିଏ ପାଣି ଭିତରୁ ଆସିଛି । କିଏ ପାହାଡ଼ରୁ ଆସିଛି ତ କିଏ ମରୁଭୂମିରୁ ଆସିଛି । ସଭିଏଁ କହିବାକୁ ଆଗଭର । ସମସ୍ତଙ୍କ କଥା ସରିଲେ ଯାଇ ସଭାପତି କହିବେ । ନିଜର ମତ ଦେବେ ।





ବେଳ ରତରତ ହେଲା । ମାଛି ଅନ୍ଧାର ମାଡ଼ି ଆସିଲା । ତଥାପି କଥା ସରୁନି । କେତେବେଳେ ଯାଇ ସମସ୍ତଙ୍କ କଥା ସରିଲା । ସେତେବେଳକୁ ବିଲୁଆ ଡାକ ଦେଲାଣି, ହୁକେ... ହୋ... ।

ଫୁଲକୋବି ସମସ୍ତଙ୍କ କଥା ଶୁଣୁଥାଏ । ସେ ଦେଖିଲା ଏକା ଜାଇଫୁଲ ଚୁପଚାପ୍ ବସିଛି । ଉଁ ନାଇଁ କି ଚୁ ନାଇଁ । ସେଇଠୁ ସେ ପାଟିକରି କହିଲା- "ହେ ଜାଇଫୁଲ, ମଉନ ହେଇ କାହିଁକି ବସିଛୁ ? କହ ତୁ କେମିତି ଫୁଟୁ ? ଜଲ୍‌ଦି କହ, ରାତି ହେଲାଣି ।"

ଜାଇଫୁଲ ଉଠି ଠିଆ ହେଲା। ନହକା ନହକା ଦେହ। ଧୀର ସ୍ୱରରେ କହିଲା-"ମୁଁ କ'ଣ କହିବି ଯେ! ନିଜ କଥା କ'ଣ ନିଜେ କହନ୍ତି ? ନିଜ ଗୁଣ କଥା ନିଜ ତୁଣ୍ଡରେ କହିଲେ ଶୋଭାପାଏନି। ମୁଁ କେମିତି ଫୁଟେ ସେଇଟା ତମେ ଆପଣେ କହ। ଏଇ ସଭାଜନ କହନ୍ତୁ।"

ସଭିଏଁ ଚୁପ୍। କେଡ଼େ ଗୁଣର କଥାଟାଏ କହିଲା ଜାଇଫୁଲ। ଆଉ ସମସ୍ତେ ରଡ଼ି କରି ନିଜ ବଡ଼େଇ ନିଜେ କହିଲେ। ମୁଁ ଏମିତି, ମୁଁ ସେମିତି।



ଶେଷକୁ ଫୁଲକୋବି ଜାଇଫୁଲକୁ ପାଖକୁ ଡାକିନେଇ କହିଲା- "ମୁଁ ଜାଣେ ଜାଇଫୁଲ କେମିତି ଫୁଟେ।"

ସେଇଠୁ ଜାଇଫୁଲର ଟିକି ପାଖୁଡ଼ାକୁ ହଲେଇ ଦେଇ ସେ କହିଲା- "ତୁ ଫୁଟୁଥାଉ ଥିଇରି ଥିଇରି, ବାସ ବଣ୍ଟୁଥାଉ ଫିଇରି ଫିରି।" ସମସ୍ତେ ସେଇଠୁ ତାଳିମାରି ଜାଇଫୁଲକୁ ବାହାବା ଦେଲେ। ସଭା ସରିଲା।

# ସାବାସ୍ କୋଇଲି

ଦିନକର କଥା । ଭୋର୍ ସକାଳ । ଖରା ପଡ଼ି ନ ଥାଏ । କୋଇଲିଟିଏ ଆମ୍ବଗଛ ଡାଳରେ ବସି ଗୀତ ଗାଉଥାଏ-କୁଉ... କୁଉ... ।





ଏତିକିବେଳେ ବଣିଟିଏ ଆସିଲା । କୋଇଲି ପାଖରେ ବସି କହିଲା-ଆ' ଯିବା ।

କୋଇଲି ପଚାରିଲା, କୁଆଡ଼େ ?

ବଣି ଉତ୍ତର ଦେଲା, ଏଇ ଏମିତି ବୁଲିବା, ଡେଇଁବା, ଗମାତ କରି ଖେଳିବା ।

କୋଇଲି କହିଲା, ଆରେ ଏଇଟା ପରା ମୋର ଗୀତ ଅଭ୍ୟାସ ବେଳ !

ବଣି କହିଲା-ଆସୁନୁ ସେଥିରୁ କ'ଣ ପାଇବୁ ? ମୁଁ ତ କିଛି ଅଭ୍ୟାସ ଫଭ୍ୟାସ କରୁନି । ମୋର କ'ଣଟା ଅସୁବିଧା ହେଉଛି ?

କୋଇଲି ହସି ହସି କହିଲା-"ଯେତେବେଳେ ମୋର ଯେଉଁ କାମ କରିବା କଥା ମୁଁ ସେଇ କାମ କରିବି। ତୋ କଥାରେ ପଡ଼ି ଡେଇଁବି କାହିଁକି ? ମୁଁ ଅଭ୍ୟାସ କରି କରି ଭଲ ଗୀତ ଗାଏ ବୋଲି ଲୋକମାନେ ମତେ ଆଦର କରନ୍ତି।

ତୁ' ତୋ କାମ କର। ମତେ ଆଉ ଡାକ୍‌ନା।

ସେତିକିବେଳେ ଆମ୍ବଗଛ କଅଁଳ ପତର ହଲେଇ କହିଲା-ସାବାସ୍ କୋଇଲି, ଠିକ୍ କଥା କହିଛୁ।

ବଣି ଏଥର ଆଉ ପାଟି ନ ଫିଟେଇ ଫୁର୍‌କିନା ଉଡ଼ିଗଲା।

କୋଇଲି ଆଗଭଳି ଗୀତ ଅଭ୍ୟାସ ଆରମ୍ଭ କରିଦେଲା। କୁଉ... କୁଉ...।



# କୁନି ବେଲୁନ୍ କଥା

ଗୋଟିଏ ଥାଏ କୁନି ବେଲୁନ୍ ।

ଥରେ ତା'ର ମନ ହେଲା ସେ ଆକାଶ ରାଇଜକୁ ଯିବ । ସେଠି କ'ଣ ଅଛି ଦେଖିବ । ସେ ଇଆଡ଼େ ଚାହିଁଲା; ସିଆଡ଼େ ଚାହିଁଲା । ହେଲେ ଯିବ କେମିତି ?

ଏତିକିବେଳେ ସେଇବାଟେ ବୁଢ଼ା ବେଲୁନ୍ ଆକାଶକୁ ଯାଉଥିଲା କୁନି ବେଲୁନ୍ ତାକୁ କହିଲା-

"ବୁଢ଼ା ଅଜା ମତେ ସାଙ୍ଗରେ ନିଅ,
ଆକାଶ ରାଇଜ ଦେଖେଇ ଦିଅ।"

ବୁଢ଼ା ବେଲୁନ୍ କୁନି ବେଲୁନ୍‌ର ହାତ ଧରିଲା। ଦୁହେଁ ସାଙ୍ଗ ହେଇ ଆକାଶକୁ ଉଠିଲେ। ବାଃ କେଡ଼େ ମଜା ସତରେ! ଉପରକୁ ଉଠିବା ବଢ଼ିଆ ମଜା। ଶୀତେଇ ଯାଉଥାଏ କୁନି ବେଲୁନ୍‌ର ଦେହ।

ଏମିତି ଉଡ଼ି ଉଡ଼ି ସେମାନେ ମେଘ ରାଇଜରେ ପହଞ୍ଚିଲେ। କୁନି ବେଲୁନ୍ କହିଲା-ଅଜା! ମତେ ଏଥର ଛାଡ଼ିଦିଅ। ମୁଁ ଟିକିଏ ଏକା ଏକା ମେଘ ରାଇଜରେ ବୁଲିବି।

ବୁଢ଼ା କହିଲା-ହଉରେ ନାତି।





କୁନି ବେଲୁନ୍ ଦେଖିଲା କେତେ ମେଘ ସେଠି ଉଡୁଛନ୍ତି । କଳାଧଳା ମେଘ । ଫିକା ନାଲି ମେଘ । ପାଉଁଶିଆ ମେଘ । ହେଲେ ସମସ୍ତଙ୍କ ଭିତରେ କଳାମେଘ ନଇଁନଇଁ ଧୀରେ ଧୀରେ ଉଡୁଥାଏ । କୁନି ବେଲୁନ୍‌କୁ ଏକଥା ଅଡୁଆ ଲାଗିଲା । ସେଇଠୁ ସେ କଳାମେଘ ପାଖକୁ ଯାଇ ପଚାରିଲା-

"କଳାମେଘ ଭାଇ କହ କାହିଁକି,
ଧୀରେ ଉଡୁଅଛ ନଇଁ ନଇଁକି ?''

କଳାମେଘ ତା' କଥା ଶୁଣି ଫସ୍‌କିନା ହସିଦେଲା । ସେ ହସରେ ଘଡ଼ଘଡ଼ି ଶୁଭିଲା । ବିଜୁଳି ଚମକିଲା । ଥମ୍‌କିନା ହେଇଗଲା କୁନି ବେଲୁନ୍‌ର ଛାତି ।

କଳାମେଘ କୁନି ବେଲୁନ୍‌ର ମୁଣ୍ଡକୁ ଆଉଁସି ଦେଇ କହିଲା-

"କଳାମେଘ ମୁହିଁ ପାଣିରେ ଭରା,
ମୋହ ଯୋଗୁଁ ଝରେ ବରଷା ଧାରା,
ଘଡ଼ଘଡ଼ି ମାରେ ବିଜୁଳି ମାରେ,
ଯେତେ ଇଚ୍ଛା ତେଣେ ଯାଇ ମୁଁ ପାରେ।"

କୁନି ବେଲୁନ୍ କହିଲା, ତୁମେ କ'ଣ ଏଇଲାଗେ ବରଷିବି ?
କଳାମେଘ କହିଲା-ହଁ, ସେଇଥିପାଇଁ ପରା ମୁଁ ତଳକୁ ଯାଉଛି।



ସେଇଠୁଁ କୁନି ବେଲୁନ୍ କ'ଣ ଭାବିଲା କେଜାଣି, କହିଲା-ତା'ହେଲେ ମତେ ଟିକେ ବରଷା ସାଥିରେ ତଳକୁ ପଠେଇଦିଅ। ମୁଁ ଅନେକବେଳୁ ଆସିଲିଣି। ତଳେ ମୋ ମା' ମତେ ଚାହିଁ ବସିଥିବ।

କଳାମେଘ ହଉ' କହି କ'ଣ କଲାନା,
ଝରେଇଲା ପାଣି ଝଅର ଝର
ବରଷା ହେଲାରୁ
ବେଲୁନ୍ ଖସିଲା ସଅର ସର।



ସତକୁ ସତ କେତେବେଳେ ଆସି କୁନି ବେଲୁନ୍ ତଳେ ପହଞ୍ଚିଲା ସେ ନିଜେ ବି ଜାଣିପାରିଲାନି।

# ଅଳସୁଆ ଝିଣ୍ଟିକା

ଖରାଦିନ । ସକାଳ ପାଉ ପାଉ ଖରା ଟକ୍‌ମକ୍ ଫୁଟେ ।

ରାତି ପାହିଲା । ଯିଏ ଯାହାର କାମରେ ବାହାରିଲେ । ପିମ୍ପୁଡ଼ି, ଜନ୍ଦା, ପତରଲଟା ସମସ୍ତେ । ସେଦିନ କିନ୍ତୁ ଝିଣ୍ଟିକା ଆଉ ଉଠିଲାନି । ଅଳସ କଲା । ଭାବିଲା ଆଉ ଟିକିଏ ବେଳ ଗଡ଼ୁ ।

ପିମ୍ପୁଡ଼ି କହିଲା, ଝିଣ୍ଟିକା ଭାଇ ! ଆ' ଯିବା ।

ଝିଣ୍ଟିକା ମୁହଁ ବୁଲେଇ ଶୋଇଲା ।





ଜନ୍ଦୀ ପଚାରିଲା, ଉଠୁନୁ କାହିଁକି ? ଡେରି ହେଲାଣି, ଖରାପଡ଼ିଲାଣି । ଝିଣ୍ଟିକା ଆଖି ଉପରେ ଡେଣା ଘୋଡ଼େଇ ଶୋଇଲା । ଉଁ କହିଲାନି କି ଚୁଁ କହିଲାନି ।

ପତରଲଛା ପିମ୍ପୁଡ଼ିକୁ ଶୁଣେଇ ଶୁଣେଇ କହିଲା, ମୁଁ ଯାଉଚି । କେମିତି କାମ ସାରିଦେଇ ପୁଣି ଆସି ପତର ତଳେ ଲୁଚିଯିବ । ନ ହେଲେ ପ୍ରାଣ ଯିବ । ତୁ ଆସୁନୁ ? ଝିଣ୍ଟିକା ତା'ର ଆସୁ କି ନ ଆସୁ ।

ଝିଣ୍ଟିକା ରାଗିଯାଇ କହିଲା-ଯାଃ, ପଳା ସବୁ ଏଠୁ । ମୋ ନିଦ ଭାଙ୍ଗନା ।



ଏମିତି କେତେବେଳ ଗଲା । ଚାରିଆଡ଼ ତାତିବାରୁ ଝିଣ୍ଟିକା ଉଠିଲା । ପେଟରେ ପ୍ରବଳ ଭୋକ । କ'ଣ କରାଯାଏ । ବାହାରକୁ ବାହାରି ମାଟିରେ ପାଦ ପକେଇଲା ସେ । ଇଲୋ ମାଆଲୋ । ଗୋଡ଼ ଫୋଟକା ହେଇଯିବ । ଡେଣା ପୋଡ଼ିଗଲାପରି ଲାଗୁଚି । ଭାରି ଖରା । ତାତିଲା ଲୁହାପରି ଗରମ ।

ଝିଣ୍ଟିକା ଖରାକୁ ନେହୁରା ହେଇ କହିଲା ଭାଇ, ଟିକେ ଆଜି ଦିନକ ପାଇଁ ନରମ ହେଇଯା । ମୁଁ କ'ଣ ଟିକେ କୋଉଠୁ ପାଟିରେ ପୂରେଇ ଦେଇ ପଳେଇ ଆସିବା ।

ଖରା କହିଲା, ମୁଁ ମୋ କାମ କରୁଚି । ସେଥିରେ ଖିଲାପ୍ କେମିତି କରିବି ? ମତେ ଅନ୍ୟମାନେ ଅଳସୁଆ କହିବେନି ?





ଝିଣ୍ଟିକା ମେଘକୁ ଡାକ ପକେଇଲା । ହେଲେ ମେଘ ବି ତା' କାମରେ କୁଆଡ଼େ ପଳେଇ ଯାଇଥିଲା । ଆଖ ପାଖରେ ଦେଖା ନ ଥିଲା ତା'ର ।

ଝିଣ୍ଟିକାକୁ ଆଉ ବାଟ ଦିଶିଲାନି । ଭୋକରେ ପେଟ ହୁଳାହୁଳା କରୁଥାଏ । ସେ ଭାବିଲା ପୁଣି ଖରା ମଉଳିଲେ ଯାଇ ପାହା ।

ଟିକେ ଅଳସୁଆମୀ କଲି ବୋଲି କି କଷ୍ଟ ପାଇଲି ସତେ !

# ଯ୍ୟାଃ... ଛୁଉଁ...

ଦିନେ ବଣରେ ସିଂହ ଶୋଇଥାଏ। ମହାମଉଜରେ ପଡ଼ିଥାଏ ଗୋଡ଼ ହାତ ମେଲି। ଘୁଙ୍ଗୁଡ଼ି ମାରୁଥାଏ କାହିଁରେ କ'ଣ। ତା' ଘୁଙ୍ଗୁଡ଼ି ଶବ୍ଦରେ ବଣ ମୂଲକ ପଡୁଥାଏ ଉଠୁଥାଏ। ଚଉଦିଗ କମ୍ପୁଥାଏ-ଘଡ଼ର୍ ଘଡ଼ ଘଡ଼୍ ଘଡ଼୍, ଘଡ଼ର୍ ଘଡ଼୍ ଘଡ଼୍।

ଏତିକିବେଳେ ମହୁମାଛିଙ୍କ ଉପରେ ବିପଦ ମାଡ଼ି ଆସିଲା । ଦଳେ ବାଣୁଆ ନିଆଁହୁଳା ଧରି ବଣରେ ପଶିଲେ । ମହୁଫେଣା ସବୁରେ ନିଆଁହୁଳା ଦେଖେଇ ସେମାନେ ମହୁମାଛିମାନଙ୍କୁ ତଡ଼ିଲେ । ମାଛିମାନେ ପ୍ରାଣ ବିକଳରେ ଏଣେତେଣେ ଧାଉଁଥାଆନ୍ତି । ସେମାନେ ଏବେ କରିବେ କ'ଣ ? ବସା ନ ଜଗିଲେ ବାଣୁଆମାନେ ଫେଣାରୁ ମହୁ ନେଇ ପଳେଇବେ । ବସା ଛାଡ଼ି ନ ଗଲେ ନିଆଁ ଧାସରେ ସେମାନଙ୍କ ଜୀବନ ଯିବ । କିଏ ସେମାନଙ୍କୁ ଏବେ ରକ୍ଷା କରିବ ? ବଣର ରାଜା ସିଂହ । ଯଦି ସେ ହେଣ୍ଟାଳ ଛାଡ଼ି ଦଉଡ଼ି ଆସନ୍ତେ ତେବେ ବାଣୁଆଙ୍କ ଭାଳେଣି ପଡ଼ିଯାଆନ୍ତା । କିଏ କୁଆଡ଼େ ପଳାନ୍ତେ ଜୀବନ ଧରି । ହେଲେ ସିଏ ଏଇଲେ କେଉଁଠି ଥିବେ କିଏ ଜାଣେ ? କିଏ ଯାଇ ତାଙ୍କୁ ଏ ବିପଦ ବେଳେ ଡାକିବ ?





ସମସ୍ତଙ୍କ କଥା ଶୁଣି ବୁଢ଼ା ମହୁମାଛିଟିଏ କହିଲା-"ମୁଁ ଘଣ୍ଟାଏ ତଳେ ସିଂହରାଜାଙ୍କୁ ଦେଖିଛି । ଚକା ପାହାଡ଼ ତଳେ ଗୋଟେ ଗଛମୂଳେ ଶୋଇ ସେ ଘୁଙ୍ଗୁଡ଼ି ମାରୁଥିଲେ । କିଏ ଯାଇ ତାଙ୍କୁ ଉଠେଇ ଦିଅନ୍ତାନି ? ନିଆଁହୁଳାର ପୋଡ଼ା ଗନ୍ଧ ବାରି ସେ ନିଶ୍ଚୟ ଏଠିକୁ ଦଉଡ଼ି ଆସନ୍ତେ ।

ଆମେ ସମସ୍ତେ ରକ୍ଷା ପାଇଯାଆନ୍ତେ । ହେଲେ କିଏ ଯିବ ? କେମିତି ଉଠେଇବ ତାଙ୍କୁ ? ବଡ଼ ବିଷମ କଥା ।"

ଶେଷକୁ ଗୋଟିଏ ପିଲା ମହୁମାଛି କହିଲା-"ଏଇ କଥା ତ ? ହଉ ମୁଁ ଯାଉଛି । ସିଂହ ରାଜାଙ୍କୁ ଉଠେଇଦେବି ।"

ଅନ୍ୟମାନେ କହିଲେ ନାଇଁ ତୁ ପିଲାଲୋକ । ସେ କାମକୁ ପାରିବୁନି । ହେଲେ ପିଲା ମହୁମାଛି କାହାକଥା ଶୁଣିଲାନି । ଉଁ... ଶବ୍ଦ କରି ଉଡ଼ି ଚାଲିଲା ଚକା ପାହାଡ଼ ଆଡ଼େ ।

ସିଂହ ମୁହଁଟାକୁ ଉପରକୁ କରି ଶୋଇଥାଏ ଚିତ୍ ହୋଇ । ଘୁଙ୍ଗୁଡ଼ି ମାରୁଥାଏ-ଘଡ଼ର୍ ଘଡ଼୍ ଘଡ଼୍ ଘଡ଼୍, ଘଡ଼ର୍ ଘଡ଼୍ ଘଡ଼୍ ଘଡ଼୍ । ପିଲା ମହୁମାଛି କାହାକଥା ନ ମାନି ପଳେଇ ଆସିଲା ସିନା, ଏବେ କରିବ କ'ଣ ? ସିଂହ ରାଜାକୁ ଉଠେଇବ କେମିତି ? ବହୁତ ଚିନ୍ତା କରି ଶେଷରେ ସେ ଯାଇ ସିଂହର ଲାଞ୍ଜରେ ବସିଲା । ଲାଞ୍ଜ ଉପରେ ଡେଇଁଲା, କୁଦିଲା । ଲାଞ୍ଜ ବାଳକୁ ସଲ ସଲ କଲା । ହେଲେ ଫଳ କିଛି ହେଲାନି । ସେଇଠୁ ଉଡ଼ିଆସି ପେଟ ଉପରେ ବସିଲା । ଡେଇଁଲା, କୁଦିଲା, ନାଚକଲା, ପାଟିକଲା । ସିଂହ ଯେମିତି ଶୋଇଥିଲା ସେମିତି ଶୋଇଥାଏ । ଘୁଙ୍ଗୁଡ଼ି ଯୋଗୁଁ ଖାଲି ପେଟଟା ପଡୁଥାଏ, ଉଠୁଥାଏ । ଏଥର ସେ ଉଡ଼ିଯାଇ ସିଂହରନାକ ଉପରେ ବସିଲା । "ବାପ୍‌ରେ ବାପ୍ । ଏଟା ନାକ ନା ଘଡ଼ ଘଡ଼ କଳ ।" ସିଂହର ନାକରୁ ଗରମ ପବନ ବାହାରୁଥାଏ ଘଡ଼ ଘଡ଼ ହେଇ । ପୁଣି ବାହାରୁ ପବନ ନାକ ଭିତରକୁ ପଶି ଯାଉଥାଏ ସଡ଼ ସଡ଼ ହେଇ । ଡରିଗଲା ପିଲା ମହୁମାଛି । କ'ଣ କରିବ ବୋଲି ବାଟ ପାଇଲାନି । ଭାବିଲା, ଯାଉଛି କାନ ପାଖରେ ଗୁଣୁଗୁଣୁ ହେଇ ସିଂହରାଜାଙ୍କୁ ଉଠେଇ ଦେବି ।

ଏଇଆ ଭାବି ସେ ଉଠି ଉଡ଼ିବାକୁ ଯାଉଛି, ସିଂହର ନାକ ଭିତରକୁ ସେ ଆପେ ଆପେ ଟାଣି ହେଇଗଲା ।





"ଇଲୋ ବୋଉଲୋ", କହି ରଡ଼ି ଛାଡ଼ିଲା ପିଲା ମହୁମାଛି । ହଠାତ୍ କ'ଣ ହେଲା କେଜାଣି, ସିଂହ ଧଡ଼ପଡ଼ ହେଇ ଉଠିପଡ଼ିଲା । ଉଠିପଡ଼ି ଛିଙ୍କିଲା-ୟାଃ... ଛୁଉଁ..., ୟାଃ... ଛୁଉଁ..., ୟାଃ... ଛୁଉଁ... ସିଂହର ନାକ ଭିତରୁ ଫୋପାଡ଼ି ହେଇ ପଡ଼ିଲା ପିଲା ମହୁମାଛି । ଦେହ ମୁଣ୍ଡ ସରପଟ ଓଦା । କେମିତି ନାଲୁଆ ନାଲୁଆ ଲାଗୁଥାଏ । ସିଂହ ଛିଙ୍କି ସାରିବା ପରେ ହେଷ୍ଟାଳ ପକେଇଲା-ଘାଆଉଁ ଘାଆଉଁ ଘାଉଁ, ଘାଆଉଁ ଘାଆଉଁ ଘାଉଁ ।

ବାଣୁଆମାନେ ସିଂହର ଛିଙ୍କ ଓ ରଡ଼ି ଯେମିତି ଶୁଣିଛନ୍ତି ଭୟରେ ତାଙ୍କ ହାତରୁ ନିଆଁହୁଳା ସବୁ ତଳେ ପଡ଼ି ଲିଭିଗଲା । 'ମାଆଲୋ ବାପାଲୋ', କହି ଯେ ଯୁଆଡ଼େ ପଳେଇଲେ ପ୍ରାଣ ବିକଳରେ । ପିଲା ମହୁମାଛି ନିଜ ଦେହକୁ ପୋଛି ପୋଛି ଶୁଖେଇଦେଲା । ସେଇଠୁ ଖୁସି ମନରେ ଉଅଁ.. ଶବ୍ଦ କରି ଉଡ଼ି ଆସିଲା ସାଥୀମେଳକୁ ।



# ରାଘବ ମାଛ

ପୋଖରୀଟିଏ। ହୁଡ଼ା ଉଚ୍ଚା ଉଚ୍ଚା। କାହିଁରେ କ'ଣ ଗଭୀର। ପାଣି କାଚକେନ୍ଦୁ ପରି ସଫା। ପଦ୍ମଫୁଲ ଫୁଟେ କେତେ ନା କେତେ।

ସେଥିରେ ଥାଆନ୍ତି ନାନା ଜାତିର ମାଛ। କୁନି କୁନି, ସାନ ସାନ କେତେ ଜାତିର। ଚେଙ୍ଗ, ଗଡ଼ିଶ, କେରାଣ୍ଡି, ପୋହଳା, ପୋବତା, ବାଇଁଶପତିରି, ମହୁରାଳି ଏମିତି କେତେ କ'ଣ। ସେମାନଙ୍କ ଭିତରେ ଥାଏ ଗୋଟେ ବଡ଼ ମାଛ। ଏଡ଼େ ମୁଣ୍ଡ, ଏଡ଼େ ଲାଞ୍ଜ। ଆଖି ଢିମା ଢିମା। ହାଉଁ ବୋଲି ଆଁ କରିଦେଲେ ତା' ପାଟିରେ ଶହେ ପୋହଳା ପଶିଯିବେ। ତା' ନାଁ ରାଘବ।





ସେ କାହାକୁ ମାନେନା । କାହା ସାଙ୍ଗରେ ମିଶେନା କି କାହା ସାଙ୍ଗରେ ଖେଳେନା । ଏକୁଟିଆ ସବୁବେଳେ ନିଶ ଫୁଲେଇ ବୁଲୁଥାଏ । ଯିଏ ହାବୁଡ଼େ ପଡ଼େ ତାକୁ କହେ-"ଭାଗ୍ ଏଠୁ । ନ ହେଲେ ସଟାପ୍ କିନା ଗିଳିଦେବି । ଏ ପୋଖରୀ ମୋର । ମୁଁ ଏଠି ଏକା ରହିବି ।"

ଲାଞ୍ଜ ବାଡ଼େଇ ରାଘବ ବୁଲୁଥାଏ ପୋଖରୀ ଭିତରେ । ତା' ଡରରେ ଅନ୍ୟମାନେ ଯାଇ କେଉଁ କନ୍ଦିରେ ଲୁଚିଥାନ୍ତି । ସେ ପୋଖରୀର ଏପଟେ ଥିଲେ, ଅନ୍ୟମାନେ ସମସ୍ତେ ଯାଇ ସେପଟେ ।

ରାଘବର ଲାଞ୍ଜବାଡ଼ିଆ ଦେଖି କେଉଟମାନେ ଜାଣିଲେ ବଡ଼ମାଛଟାଏ ଏ ପୋଖରୀରେ ଅଛି ।

ଦିନେ ଗୋଟେ ବିରାଟ ଜାଲ ଆଣି ସେମାନେ ପୋଖରୀରେ ପକେଇଲେ।  ସବୁ ସାନ ମାଛ ଖସିଗଲେ ଜାଲରୁ। ଏକା ଧରାପଡ଼ିଲା ରାଘବ।

ଜାଲରେ ପଡ଼ି ରାଘବ ଛଟପଟ ହେଲା। କେଉଟମାନେ ମାଡ଼ି ବସି ଆଛା କରି ଦଶ ବାର ଠେଙ୍ଗା ପକେଇଲେ। ତା'ପରେ ବୋହି ନେଲେ ତାକୁ।

ରାଘବକୁ ଏମିତି ନେଲାବେଳେ କେହି ଜଣେ ବି ଆହା କି ଚୁ ଚୁ କଲେନି। ପୋଖରୀର ସବୁଠାରୁ ସାନମାଛ ଦଣ୍ଡେଇ ବି।



ଦିନେ ଗୋଟେ ବିରାଟ ଜାଲ ଆଣି ସେମାନେ ପୋଖରୀରେ ପକେଇଲେ। ସବୁ ସାନ ମାଛ ଖସିଗଲେ ଜାଲରୁ। ଏକା ଧରାପଡ଼ିଲା ରାଘବ।

ଜାଲରେ ପଡ଼ି ରାଘବ ଛଟପଟ ହେଲା। କେଉଟମାନେ ମାଡ଼ି ବସି ଆଚ୍ଛା କରି ଦଶ ବାର ଠେଙ୍ଗା ପକେଇଲେ। ତା'ପରେ ବୋହି ନେଲେ ତାକୁ।

ରାଘବକୁ ଏମିତି ନେଲାବେଳେ କେହି ଜଣେ ବି ଆହା କି ଚୁ ଚୁ କଲେନି। ପୋଖରୀର ସବୁଠାରୁ ସାନମାଛ ଦଣ୍ଡେଇ ବି।



# ମୁନା କାଉ ଓ ଜେଜେ

ଗୋଟିଏ ଥାଏ ବିରାଟ ବରଗଛ। ସେଥିରେ କେତେ ନା କେତେ କାଉ ଗାଁ ବସେଇ ରହିଥାଆନ୍ତି। କାହା ଘର ଡାଳରେ ତ କାହା ଘର ଗଛ କୋରଡ଼ରେ। ମୁନା କାଉ ସେଇ ଗାଁରେ ରହେ, ବାପା ମା' ଜେଜେଙ୍କ ସାଙ୍ଗରେ। ରାତି ହେଲେ ସେ ଜେଜେଙ୍କ ପାଖରେ ଶୁଏ।





ଜେଜେ ଖୁବ୍ ଆଦର କରନ୍ତି ମୁନାକୁ। କେତେ ଆଡ଼ର ଗପ କରନ୍ତି। ଦିନସାରା ବୁଲିବୁଲି କେଉଁଠି କ'ଣ ଦେଖିଥାଆନ୍ତି ସବୁକଥା ବସି ବଖାଣନ୍ତି। ମୁନା ବଡ଼ ବଡ଼ ଆଖି କରି ଜେଜେଙ୍କ କଥା ଶୁଣେ। ସେ ଭାବେ, ବଡ଼ ହୋଇଗଲେ ସିଏ ବି ଏମିତି ବୁଲି ବୁଲି କେତେ କଥା ଦେଖିବ, ବହୁତ ଦୂରକୁ ଉଡ଼ି ଉଡ଼ି ଯିବ। ଶେଷକୁ ଜେଜେ ପଚାରନ୍ତି-"ମୁନା, ଆଜି ତୁ କ'ଣ ଭଲ କାମ କରିଛୁ କହିଲୁ ?" ମୁନା କହେ ମୁଁ ଆଜି ବହୁତ ପାଠ ପଢ଼ିଛି। ସେ କଥା ଶୁଣି ଜେଜେ "ଆଚ୍ଛା" କହି ଟିକେ ହସି ଦିଅନ୍ତି। ଆଉ କିଛି କହନ୍ତିନି।

ସବୁଦିନେ ଏମିତି ଚାଲେ। ନିଇତି ରାତି ହେଲେ ଜେଜେ ଗପ କହନ୍ତି, ପୁଣି ପଚାରନ୍ତି-"ଆଜି ତୁ କ'ଣ ଭଲ କାମ କରିଛୁ କହିଲୁ।"

ମୁନା ଶୁଣିଛି, ସବୁଠୁ ଭଲ କାମ ହେଉଛି ପାଠ ପଢ଼ିବା। ପାଠ ପଢ଼ି ଭଲ ନମ୍ବର ରଖିବା। ତେଣୁ ସେ ଜେଜେଙ୍କୁ ଖୁସୀ କରିବା ପାଇଁ ସବୁବେଳେ କହେ, "ଆଜି ମୁଁ ବହୁତ ପାଠ ପଢ଼ିଛି। କେଉଁ ଦିନ କହେ, "ଆଜି ମୁଁ ଏତେ ପାଠ ପଢ଼ିଛି ଯେ ଖେଳିବାକୁ ବି ଯାଇନି ଟିକିଏ।" ସେ ଭାବେ ଏମିତି ଶୁଣିଲେ ଜେଜେ ତାକୁ ବାହାବା ଦେବେ, ବେଶି ଆଦର କରିବେ। ହେଲେ ଜେଜେ ସବୁବେଳେ "ଆଚ୍ଛା" "ହଉ" କହି ଚୁପ୍ ରହନ୍ତି।

ସବୁଦିନେ ମୁନା କାଉ ସ୍କୁଲ ଯାଏ। ପାଠ ପଢ଼େ। ସାଙ୍ଗସାଥୀଙ୍କ ସହ ମିଶେ। ପରୀକ୍ଷାରେ ଭଲ କରିବାକୁ ଚେଷ୍ଟାକରେ।

ବରଗଛଠାରୁ କୋଶେ ଦୂରରେ ଗୋଟେ ଆମ୍ବ ତୋଟାରେ ମୁନା କାଉର ସ୍କୁଲ। ଜେଜେଙ୍କ ବୟସର ଜଣେ ବୁଢ଼ା କାଉ ତା' ଭଳି କେତେଜଣଙ୍କୁ ପାଠ ପଢ଼ାନ୍ତି। କାଉମାନଙ୍କର ଇତିହାସ ଓ ଜୀବନ କଥା କହନ୍ତି। କେଉଁ ଋତୁରେ କେମିତି ଚଳିବ, କେଉଁ ପରିସ୍ଥିତିରେ କେମିତି ଉଡ଼ିବ, କ'ଣ ଖାଇବ, କ'ଣ ଖାଇବନି ଆଦି ବତେଇ ଦିଅନ୍ତି। ସାହିତ୍ୟ, ବିଜ୍ଞାନ, ସାମାଜିକ ପାଠ ଓ ଗଣିତ ପଢ଼ାନ୍ତି।

ମୁନା ସବୁ ପାଠରେ ଭଲ କରେ। ତାକୁ ଗଣିତ ସବୁଠୁ ବେଶି ଭଲ ଲାଗେ। କାରଣ ବହୁ ଦୂରକୁ ଓ ବହୁ ଉଚ୍ଚକୁ ଉଡ଼ିବାକୁ ହେଲେ ଗଣିତ ଜ୍ଞାନ ଦରକାର।





ଏଇମିତି ଦିନ ଗଡ଼ି ଚାଲିଥାଏ।

ଦିନେ ସଞ୍ଜବେଳେ ଜେଜେ ଦେଖିଲେ ମୁନା ମୁହଁ ଶୁଖେଇ ବସିଛି। ଜେଜେ ତା' ପାଖରେ ଆସି ବସି ପଡ଼ିଲେ। ପଚାରିଲେ-କିରେ! ଏମିତି ମୁହଁଟାକୁ ହାଣ୍ଡି ପରି କାହିଁ କରିଛୁ ? କ'ଣ ହଜେଇ ଦେଇଛୁ ନା ଭାଙ୍ଗି ଦେଇଛୁ ?

ମୁନା, ମୁଣ୍ଡ ହଲେଇ ନାହିଁ କଲା।

ଜେଜେ ପୁଣି ପଚାରିଲେ-ଆଉ କ'ଣ ବାପା ଗାଳି କରିଛି ନା ମା' ଖାଇବାକୁ ଦେଇନି ?

ମୁନା ଏଥର କହିଲା, ନାଇଁ ଜେଜେ-ମୁଁ ଜାଣିଛି ତମେ ଆଜି ପଚାରିବ,"କ'ଣ ଭଲ କାମ କରିଛୁ ବୋଲି।" ମୁଁ ଆଜି ସ୍କୁଲ ଯାଇନି କି ପାଠ ପଢ଼ିନି।

ଜେଜେ କହିଲେ, କାହିଁକି, କ'ଣ ହେଲା ?

ମୁନା କହିଲା-ଆଜି ସ୍କୁଲ ଗଲାବେଳେ ମୁଁ ଦେଖିଲି ସେପଟ କଦମ୍ବ ଗଛରେ ରହୁଥିବା ଜଣେ କାଉ ମାଉସୀ ରାସ୍ତାରେ ପଡ଼ି ଛଟପଟ ହେଉଛନ୍ତି। ଉଡ଼ିଲାବେଳେ ବିଜୁଳି ତାରରେ ତାଙ୍କ ଡେଣା ବାଜି ଭାଙ୍ଗିଯାଇଛି। ମୁଁ ସେଇଠି ଅଟକି ଗଲି। ତାଙ୍କୁ ଟେକି ଟେକି ବଡ଼ କଷ୍ଟରେ ଗୋଟେ ବୁଦା ମୂଳକୁ ନେଲି। କେତେ ଡକାଡକି କଲାପରେ ସମସ୍ତେ ଆସି ଗଦା ହୋଇଗଲେ। ତା'ପରେ ସଭିଏଁ ମିଳି ଟେକିନେଲେ ତାଙ୍କ ବସାକୁ। ଏତିକିରେ ମୋ ସ୍କୁଲ ପଢ଼ାବେଳ ଚାଲିଗଲା। ମୁଁ ଆଉ କରିଥାନ୍ତି କ'ଣ ?





ଜେଜେ, ଏତକ ଶୁଣି ମୁନା କାଉର ପିଠି ଥାପୁଡ଼େଇ କହିଲେ, "ସାବାସ୍ ମୁନା, ଏତେ ଦିନକେ ଆଜି ତୁ ଗୋଟେ ଖୁବ୍ ଭଲ କାମ କରିଛୁ। ତୁ ଜାଣିଛୁ, ପାଠପଢ଼ିବା କେବଳ ଭଲ କାମ ନୁହେଁ। ତା'ଠାରୁ ଅଧିକ ଭଲକାମ ହେଉଛି ସେ ପାଠକୁ ବୁଝି ଅନ୍ୟର ଉପକାରରେ ଲଗେଇବା। ଆଜି ତୁ ଆପେ ଆପେ ସେଇକାମ କରିଛୁ। ମନେରଖ, ଖାଲି ପାଠ ପଢ଼ିଲେ ସେଇଟା ଭଲ କାମ ବୋଲି ଭାବିବା ଠିକ୍ ନୁହେଁ।"

ମୁନା କାଉ ଚାହିଁଲା ଜେଜେଙ୍କ ମୁହଁକୁ। ଜେଜେଙ୍କ କଳା ଘୁମର ଆଖି ଖୁସୀରେ ଚକ୍‌ଚକ୍ କରୁଛି। ସେଇଠୁ ସେ କହିଲା, ହଉ ଜେଜେ, ଆଜି କ'ଣ ସବୁ ନୂଆକଥା ଦେଖିଛ କହିଲ।

